# ବିଜ୍ଞାନ-ଆବିଷ୍କର୍ତ୍ତା ଜୀବନୀ



ବୈଜ୍ଞାନିକ

# ପ୍ରିଷ୍ଟଲେ



ବୈଜ୍ଞାନିକ



# ପ୍ରିଷ୍ଟଲେ

ଶ୍ରୀ ଗୋରାଚାନ୍ଦ ମିଶ୍ର

ଜନଶକ୍ତି ପୁସ୍ତକାଳୟ

ଡାକ୍ତର ଏକ ଲମ୍ବରେ ଚାହିଁ ରହିଛନ୍ତି ରୋଗୀକୁ । ଆଗରେ ଅପରେସନ ଟେବୁଲ । ତା' ଉପରେ ପଡ଼ିରହିଛି ରୋଗୀ । ଜଣା-ପଡ଼ୁଚି ଦେହରେ ଯେପରି ଟୋପାଏ ହେଲେ ରକ୍ତ ନାହିଁ । ଦେହଟା ଶେତା ପଡ଼ିଯାଇଛି । ପାଖରେ ଠିଆ ହୋଇଥିବା ଲୋକ ଜଣକ ଡାକ୍ତର କ'ଣ ଚାହୁଁଛନ୍ତି ଜାଣିପାରିଲେ । ସଙ୍ଗେ ସଙ୍ଗେ ଡ଼କାଇଲେ ନର୍ସକୁ । ସଙ୍ଗେ ସଙ୍ଗେ ରୋଗୀକୁ ଗ୍ୟାସ୍ ଦିଆଗଲା । ଦେଖିଲେ, ରୋଗୀର ନିଃଶ୍ୱାସ ପ୍ରଶ୍ୱାସ ଠିକ୍ ଚାଲିଛି । ଡାକ୍ତର ମୁଣ୍ଡ ହଲେଇ କହିଲେ, ଏଥର ଠିକ ଅଛି । ଅପରେସନ ଚାଲିଲା । ଡ଼ାକ୍ତରଙ୍କ ଭରସା ହେଲା ରୋଗୀ ବଞ୍ଚିଯିବ ।

ସମୁଦ୍ର ଭିତରେ ବୁଡ଼ାଜାହାଜର ମଧ ଠିକ୍ ଏହି ଅବସ୍ଥା । ଗ୍ୟାସ୍ ସରିଗଲେ ସବୁ ଶେଷ । ବୁଡ଼ାଜାହାଜର କାମ ହେଉଛି ଅନନ୍ତ ସମୁଦ୍ରର ଲୁଣି ପାଣି ଭିତରେ ବରାବର ବୁଡ଼ବୁଡ଼ ଚାଲିବା । ଗ୍ୟାସ୍ ସରିଯିବା ମାତ୍ରେ ସେ ଉପରକୁ ଚାଲିଆସେ ଗ୍ୟାସ୍ ନେବା ପାଇଁ । ତେଣୁ ବୁଡ଼ାଜାହାଜର କ୍ୟାପଟେନଙ୍କ ସବୁବେଳେ ଆଖି ଥାଏ ଗ୍ୟାସ୍ ଟାଙ୍କି ଉପରେ । ଅଛି ନା ସରିଲାଣି ? ଯଦି ବା ଅଛି ଆଉ କେତେ ସମୟ ଯିବ ? ଆଗରୁ ସତର୍କ ନ ହେଲେ ସମସ୍ତେ ସେହି ପାଣି ଭିତରେ ହିଁ ଚିରଦିନ ପାଇଁ ରହିଯିବେ ।

ସେହିଭଳି ପର୍ବତ ଆରୋହଣ ଲାଗି ମଧ୍ୟ ଗ୍ୟାସ ନିତାନ୍ତ ଆବଶ୍ୟକ । ଏହି ଗ୍ୟାସ୍ ସାହାଯ୍ୟରେ ହିଁ ପୃଥିବୀର ସର୍ବୋଚ୍ଚ ପର୍ବତଶୃଙ୍ଗ ହିମାଳୟର ଏଭେରେଷ୍ଟ ଜୟ କରିବା ସମ୍ଭବ ହେଲା ।

ଏହି ଗ୍ୟାସ୍‌ର ନାମ ଦେଇଥିଲେ 'ଅକ୍‌ସିଜେନ'। ଏହାକୁ ଜୀବନ ନେୟାତ କୁହାଯାଇପାରେ। ଗତ ପ୍ରାୟ ଦୁଇଶହ ବର୍ଷ ପୂର୍ବେ ଏହା ଆବିଷ୍କୃତ ହୋଇଥିଲା। ବିନା ଅକ୍‌ସିଜେନରେ ମଣିଷ ବଞ୍ଚି ନପାରେ।

ଶିକ୍ଷକ ଉକ୍ତରର ଆସଓ୍ୟାର୍ଥ। ଗ୍ରାନ୍‌ଭେଣ୍ଟୀ ଏକାଡେମୀର ସାମନାରେ ଠିଆ ହୋଇଛି ଜଣେ ଯୁବକ। ନୀରବ, ନିଶ୍ଚଳ ସେ ଯେପରି କି ଅତି ଅନୁଗତ ଛାତ୍ର।

ଶିକ୍ଷକ ପଚାରିଲେ; 'ତୁମେ ତାହାହେଲେ ଯୋସେଫ ପ୍ରିଷ୍ଟଲେ ?'

ପିଲାଟି ଦେଖିବାକୁ ସେତେ ସୁନ୍ଦର ନୁହେଁ। ସ୍ୱାସ୍ଥ୍ୟ ସବଳ ମଧ୍ୟ ନୁହେଁ। ବାକ୍‌ଯନ୍ତ୍ରାଂଶ ଅସଜଡା। ମାତ୍ର ଆଖିଦୁଇଟି ଘୋର ଉଜ୍ଜ୍ୱଳ। ଏକାଗ୍ରତା ପୂରି ରହିଛି ଦୁଇଟିଯାକ ଆଖିରେ। ଘୋର ତୀକ୍ଷ୍ଣ ବୁଦ୍ଧିଶାଣୀ। ଶିକ୍ଷକ ଭାବିଲେ, ଏପରି ତାଙ୍କୁ ଚାହିଁ ରହିବାରେ ସେ ମନେ ମନେ କିଛି ଖରାପ ଭାବିଥାଇପାରେ। ତେଣୁ କଥାକୁ ବୁଲାଇଦେବା ପାଇଁ କହିଲେ; 'ମୁଁ ତମର ସବିଶେଷ ବିବରଣୀ ଜାଣିବାକୁ ଚାହୁଁଥିଲି। ସେଥିପାଇଁ ଟିକିଏ ମତେ ଅପେକ୍ଷା କରିବାକୁ ପଡ଼ିବ।' ତା' ପରେ ସେ ଖଣ୍ଡିଏ କାଗଜରେ ଲେଖିବାକୁ ଲାଗିଲେ - -

'ଯୋସେଫ ପ୍ରିଷ୍ଟଲେ। ଜନ୍ମ ୟର୍କସାୟାରରେ ୧୭୩୩ ମସିହା ମାର୍ଚ୍ଚ ୧୩ ତାରିଖ ଦିନ।' 'ତାହାହେଲେ ତୁମର ବୟସ ବର୍ତ୍ତମାନ ୧୯ ବର୍ଷ ? ପଢ଼ି ସାରିବା ପରେ ଆସିଛ ନା ?'

ଶିକ୍ଷକ କେବଳ ପ୍ରିଷ୍ଟଲେଙ୍କୁ ଭୁଲାଇବା ପାଇଁ ଏସବୁ ଲେଖିଲେ। କାରଣ ସେ ଆଗରୁ ପ୍ରିଷ୍ଟଲେଙ୍କ ସମ୍ପର୍କରେ ସବୁବିଷୟ ଜାଣିଥିଲେ। ଏହି ଛାତ୍ରଜଣଙ୍କ କେବେ ଆସିବ ସେଥିପାଇଁ ସେ

ବ୍ୟଗ୍ର ଭାବରେ ଅପେକ୍ଷା କରି ରହିଥିଲେ । ପ୍ରିଷ୍ଟ୍‌ଲେ ଜଣେ ସୁଚତୁର ଛାତ୍ର, ଭାରି ମେଧାବୀ—ଏକଥା ତାଙ୍କୁ ଜଣାଥିଲା । ପ୍ରିଷ୍ଟ୍‌ଲେ ଗଣିତ ଶିକ୍ଷାରେ ଥିଲେ ଜଣେ ବିଚକ୍ଷଣ ଛାତ୍ର । ସେ ହେବ୍ରୁ, କାଲଡ଼ି, ଆରବିକ ଓ ସିରିଆକରେ ଥିଲେ କୃତବିଦ୍ୟ । ଭାଷାଜ୍ଞାନ ଥିଲା ତାଙ୍କର ପ୍ରବଳ । ଲାଟିନ, ଗ୍ରୀକ୍ ପ୍ରଭୃତି ଯେଉଁ ଭାଷାର ପ୍ରଚଳନ ନାହିଁ ବୋଲି କହିଲେ ଚଳେ, ତାଙ୍କୁ ମଧ୍ୟ ସେ ଆୟତ୍ତ କରି ପାରିଥିଲେ । ଫ୍ରେଞ୍ଚ, ଇଟାଲିଆନ ଓ ଡ଼ଚ ପ୍ରଭୃତି ଆଧୁନିକ ଭାଷା ମଧ୍ୟ ସେ ଜାଣି ଥିଲେ, କହୁଥିଲେ, ଲେଖି ପାରୁଥିଲେ ।

ସେ ପ୍ରିଷ୍ଟ୍‌ଲେଙ୍କୁ କହିଲେ, "ଏହି ଏକାଡ଼େମୀରେ କଠୋର ପରିଶ୍ରମ କରିବାକୁ ପଡ଼ିବ । ସକାଳ ଛଅଟାବେଳୁ ଉଠିବ । ତା' ପରେ ଉପସ୍ଥାନ ବା ରୋଲକଲ ଓ ପ୍ରାର୍ଥନା । ଆଠଟା ପର୍ଯ୍ୟନ୍ତ ପାଠପଢ଼ା । ଜଳଖିଆ ପରେ ପୁଣି ପ୍ରାର୍ଥନା । ଦିନ ୧୦ଟାରୁ ୧୨ଟା ପାଠପଢ଼ା । ରାତି ନଅଟା ପର୍ଯ୍ୟନ୍ତ କାମ ଚାଲିବ । ମୁହୂର୍ତ୍ତେ ବି ଫୁରୁସତ ନାହିଁ । ରାତି ସାଢ଼େ ଦଶଟାବେଳେ ଯାଇ ଶୋଇବା ଘଣ୍ଟି ବାଜିବ । ବାସ୍ତବରେ କଠୋର, କଠୋର ପରିଶ୍ରମ । ପାରିବତ ?"

"ଆଜ୍ଞା, ମୁଁ ପ୍ରସ୍ତୁତ"—ଉତ୍ତର ଦେଲେ ପ୍ରିଷ୍ଟ୍‌ଲେ । ମାତ୍ର ଟିକିଏ ବିଚଳିତ ହୋଇପଡ଼ିଲା ଉଭୟ ମନେହେଲା ।

ପ୍ରିଷ୍ଟ୍‌ଲେ ଯେ ଢ଼ଙ୍ଗ କରିବ, ଏ ବିଶ୍ୱାସ ଡକ୍ଟରଙ୍କ ଆସ୍-ଓ୍ୱାର୍ଥଙ୍କର ଥିଲା ।

ସେ ପଚାରିଲେ, "ମୋର ଧାରଣା, ଈଶ୍ୱରଙ୍କ ସମ୍ପର୍କରେ ନାନା ବିଷୟ ଜାଣିବାକୁ ତୁମର ଇଚ୍ଛା । ଯେଉଁମାନେ ଏହି ବିଷୟ ପଢ଼ନ୍ତି, ପଢ଼ିସାରିବା ପରେ ଲୋକଙ୍କ ଭିତରେ ତାକୁ ପ୍ରଚାର କରିବାକୁ ଚାହାଁନ୍ତି ।"

"ଆଜ୍ଞା, ମୋର ସେହି ଉଦ୍ଦେଶ୍ୟ ।"

ଡକ୍ଟର ଆପଓ୍ୱାର୍ଥ ଆଖିରୁ ଚଷମା କାଢ଼ି ଆଗରେ ଥିବା କାଗଜ ଉପରେ ରଖିଦାଇ କହିଲେ, "ତୁମ ମନକଥା ଜାଣେ ବୋଲି ତ ପଚାରିଲି ।"

ପ୍ରିଷ୍ଟ୍‌ଲେ ସଙ୍ଗେ ସଙ୍ଗେ ଉତ୍ତର ଦେଲେ, "ସମସ୍ତଙ୍କ ଜୀବନରେ କିଛି ନା କିଛି ବାଧା ଆସିଥାଏ । ମୋ ଦେହରେ ମଧ୍ୟ କଷ୍ଟ ସେ ଲାଗିନି ତା ନୁହେଁ । ମାତ୍ର ସେ କଷ୍ଟର ମଧ୍ୟ ଉପଯୋଗ ଆବଶ୍ୟକ ।"

"ନିଶ୍ଚୟ, ନିଶ୍ଚୟ, ତାର ଉପାୟ ?" ଶିକ୍ଷକ ପଚାରିଲେ ।

ପ୍ରିଷ୍ଟ୍‌ଲେ କହିଚାଲିଲେ, ମୁଁ "କ୍ୱଚିତ ଝଗଡ଼ା କରିଥାଏ । ମୋ ଭିତରଟା ଟକ୍‌ମକ୍‌ ହୋଇ ଫୁଟୁଥାଇପାରେ; ମାତ୍ର କଥା ଗୁଡ଼ାକ ଓଠ ପାଖକୁ ଆସିବା ମାତ୍ରେ ମୋର ସ୍ୱର କୁଆଡ଼େ ଚାଲିଯାଇଥାଏ । ମୁଁ ବଳିକରି କଥା କହିପାରେନା ।"

ଶିକ୍ଷକ ଯୁକ୍ତି କଲଭଳି କହିଲେ, "ସେ କଥା ହୋଇପାରେ; ମାତ୍ର ଯିଏ ଧର୍ମପ୍ରଚାରକ ହେବ ଅନର୍ଗଳ କହି ପାରିବା ଉଚିତ । ଅନ୍ୟର ହୃଦବୋଧ କରାଇବା ଲାଗି ଏତକ ଗୁଣ ଦରକାର ।"

ପ୍ରିଷ୍ଟ୍‌ଲେ ଉତ୍ତର ଦେଲେ, "ମୁଁ ଲକ୍ଷ୍ୟ କରିଛି, ଅନେକ ପ୍ରଚାରକ ଅଛନ୍ତି, ଯେଉଁମାନେ ଖାଲି ଗଡ଼ ଗଡ଼ କହି ଥାଆନ୍ତି; ମାତ୍ର ସେମାନେ କ'ଣ ସେ ପ୍ରଚାର କରୁଛନ୍ତି ନିଜେ ଜାଣନ୍ତି ନାହିଁ । ଅନର୍ଗଳ ଭାଷଣ ଅପେକ୍ଷା ମୋର କେତୋଟି କଥାର ମୂଲ୍ୟ ଅଧିକ ।"

ଶିକ୍ଷକ ହାରି ମାନିଲା ଭଳି ସ୍ୱରରେ କହିଲେ, "ଜାଣେ, ତୁମେ ବେଶ୍ ନିଷ୍ଠାବାନ । ସବୁ ବିଷୟ ଟିକିନିଖି ଦେଖିବା ତୁମର ଇଚ୍ଛା । ମୁଁ ତୁମକୁ ଛାତ୍ର ଭାବରେ ଗ୍ରହଣ କରିନେଉଛି । ଆଚ୍ଛା; କେତେବେଳେ କଣ କରିବ, ସମସ୍ତ ନିର୍ଘଣ୍ଟ ଓ ପାଠ୍ୟକ୍ରମ ଆଜି ଲେଖିନିଅ ।"

ଶିକ୍ଷକ ଯାହା ସବୁ ଜାଣିଥିଲେ, ପ୍ରିଷ୍ଟ୍‌ଲେ ସେସବୁ ଲେଖି-ସାରିବା ପରେ ପ୍ରଶ୍ନ କଲେ, "ଆଉ ଗ୍ରୀକ ଭାଷା ? ସେ କ'ଣ ପଢ଼ା ଯିବନି ?"

ଶିକ୍ଷକ କହିଲେ, "ଆମେ ଭାଷା ଶିକ୍ଷା ଦେବାରେ ବେଶୀ ଆଗ୍ରହୀ ନୋହୁଁ ।"

ପ୍ରିଷ୍ଟ୍‌ଲେ ସମସ୍ତ ନିର୍ଘଣ୍ଟକୁ ଭଲଭାବରେ ପଢ଼ିସାରି କହିଲେ, "ସକାଳ ଛଅଟାରେ ଯାଇ ଉଠିବ ? ତାହାହେଲେ ତ ସବୁଠାରୁ ସେଉଁ ସମୟଟା ମୂଲ୍ୟବାନ, ସେ ସମୟରୁ ଘଣ୍ଟେ ନଷ୍ଟ ହୋଇ-ଗଲା କହିଲେ ଚଳେ । ଗ୍ରୀଷ୍ମ ଓ ବସନ୍ତ ଋତୁରେ ଛଅଟାବେଳକୁ ତ ସୂର୍ଯ୍ୟୋଦୟ ହୋଇ ସାରିଥିବ । ଆଚ୍ଛା, ତୁମର ଏଠି ଯାହା ବ୍ୟବସ୍ଥା ଅଛି ସିଏ ଥାଉ, ମୁଁ ପାଞ୍ଚଟା ବେଳକୁ ଉଠି ସେ ଘଣ୍ଟାକ ଭିତରେ ଗ୍ରୀକ ପଢ଼ିବି ।"

ୱାରେଣ୍ଟୋ ବର୍ତ୍ତମାନ ବ୍ରିଟିଶ ବ୍ରଡ଼କାଷ୍ଟିଂ କର୍ପୋରେସନ (ସଂକ୍ଷେପରେ ବି,ବି,ସି,)ର ଟ୍ରାନ୍‌ସମିସନ କେନ୍ଦ୍ର ଲାଗି ବିଖ୍ୟାତ । ମାତ୍ର ଦୁଇ ଶହ ବର୍ଷ ତଳେ ଏହା ଏକ ଅଖ୍ୟାତ ସହର ଥିଲା । ଏଇଠି ଥିଲା ୱାରେଣ୍ଟୋ ଏକାଡେମୀ । ଯେଉଁମାନେ ଇଂଲଣ୍ଡର ଚର୍ଚ୍ଚ୍‌ଗାବନ୍ଦ ବିରୁଦ୍ଧରେ ପ୍ରଚାର ଚଳାଇଥିଲେ, ସେମାନଙ୍କର ଶିକ୍ଷା କେନ୍ଦ୍ର ଥିଲା ଏହି କଲେଜଟି । ପ୍ରିଷ୍ଟ୍‌ଲେ ଜଣେ ପ୍ରଚାରକ ହେବା ଉଦ୍ଦେଶ୍ୟରେ ଏଇଠି ପାଠ ପଢ଼ିଥିଲେ । ଚର୍ଚ୍ଚ୍‌ବିରୋଧୀ ମତବାଦୀ-ମାନଙ୍କ ବିରୁଦ୍ଧରେ ଆଇନତଃ ଦଣ୍ଡବିଧାନର କୌଣସି ବ୍ୟବସ୍ଥା ନ ଥିଲେ ମଧ୍ୟ ଏମାନଙ୍କୁ ଅନ୍ୟ ସ୍କୁଲ କଲେଜରେ ପଢ଼ିବା ପାଇଁ ମନା ଥିଲା । ସରକାରଙ୍କ ପକ୍ଷରୁ ଯୁକ୍ତି କରାଯାଉଥିଲା ଯେ ଉକ୍ତ ମତାବଲମ୍ବୀମାନେ ଚାହିଁଲେ ଅଲଗା ଧର୍ମ ଗ୍ରହଣ କରି ପାରନ୍ତି, ମାତ୍ର ଅନ୍ୟମାନଙ୍କ ଭଳି ସେମାନେ ସୁବିଧା ସୁଯୋଗ ପାଇବା ଲାଗି ହକଦାର ହୋଇପାରିବେ ନାହିଁ ।

ଗ୍ରିଷ୍ଟ୍‌ଲେ ଥିଲେ ଜଣେ ଦୃଢଚେତା ଯୁବକ । ତାଙ୍କର ଦୈହିକ ଓ ମାନସିକ ଶକ୍ତି ଥିଲା ଅପାର । ସେ ଅଯଥା ହେଁ ହେଁ ହୋଇ ହସୁ ନଥିଲେ, ମାତ୍ର ମନ ଭିତରଟା ବେଶ୍ ଉତ୍‌ଫୁଲ୍ଲ ଥିଲା । ସେ କହୁଥିଲେ, ଦିନକ ଭିତରେ ସେ ଯାହାସବୁ କରିବାକୁ ଚାହାନ୍ତି ସେଥିଲାଗି ମାତ୍ର ୨୪ ଘଣ୍ଟା ଯଥେଷ୍ଟ ନୁହେଁ । ଭଗବାନ ଯଦି ଏହି ସମୟଟାକୁ ବଢ଼େଇ ଦିଅନ୍ତେ, ପୃଥିବୀର ବହୁ ମଙ୍ଗଳ ହୁଅନ୍ତା ।

ଭିନ୍ନମତାବଲମ୍ବୀମାନଙ୍କ ଦୃଷ୍ଟିକୋଣ ଯେପରି ବିସ୍ତୃତ ଥିଲା, ସେମାନଙ୍କ କଥାର ଓଜନ ମଧ୍ୟ ବେଶି ଥିଲା । ସମ୍ପାଦକ ଭିତରୁ ଛଅ ଦିନ କଠୋର ପରିଶ୍ରମ, ପାଠପଢ଼ାରେ ଯାଏ । ରବିବାର ଦିନ ସେମାନେ ସ୍ତ୍ରୀ ଓ ପୁରୁଷଙ୍କ ଭିତରେ ନିଜର ମତ ପ୍ରଚାର କରି-ଥାଆନ୍ତି । ମାତ୍ର ଗ୍ରିଷ୍ଟ୍‌ଲେ ଥିଲେ ଅଲଗା ପ୍ରକାରର ଲୋକ ।

ନିଜର ଦୁର୍ବଳତା କେଉଁଠି ଗ୍ରିଷ୍ଟ୍‌ଲେ ଅନୁଭବ କରୁଥିଲେ ମଧ୍ୟ ତାକୁ ସୁଧାରିବା ତାଙ୍କ ପକ୍ଷରେ ଅସମ୍ଭବ ବ୍ୟାପାର ଥିଲା । ଖଟେଇ ଖଟେଇ କହିବା ତାଙ୍କର ଜନ୍ମଗତ ଦୋଷ । କିନ୍ତୁ ସେ କୌଣସିମତେ ନିଜର ଜ୍ଞାନ ବିତରଣ କରିବାକୁ ତ ପଡ଼ିବ । ପ୍ରତି-ଦିନ ସନ୍ଧ୍ୟାରେ କାଗଜ କଲମ ଧରି ବସନ୍ତି । ଯାହା ଯେଉଁ-ଦିନ ପ୍ରଚାର କରିବାକୁ ଚାହାନ୍ତି ତାକୁ ଲେଖି ପକାନ୍ତି । ପ୍ରକାଶକ-ମାନେ ତାକୁ ନେଇ ଛୋଟ ଛୋଟ ପ୍ରଚାରପତ୍ର ଆକାରରେ ଛାପନ୍ତି । ଏହି ଲିଫଲେଟ ବା ପାମ୍ଫଲେଟର ଚାହିଦା ଖୁବ୍ ବଢ଼ିବାକୁ ଲାଗିଲା । ଆଜିକାଲି ଏହି ଧରଣର ପୁସ୍ତିକାଦି ସରକାରମାନଙ୍କ ପକ୍ଷରୁ ଛପା ହେବା ଦେଖାଯାଏ । ମାତ୍ର ସେତେବେଳେ ସରକାର ଅପେକ୍ଷା ବେସରକାରୀ ସଂସ୍ଥା, ଧର୍ମାନୁଷ୍ଠାନଆଦି ଦ୍ୱାରା ବହୁ ପୁସ୍ତିକା ଛପା ହେଉଥାଏ । ରାଜନୈତିକ ଦଳଗୁଡ଼ିକ ମଧ୍ୟ ପ୍ରଚାରପତ୍ର ଛାପିଥାଆନ୍ତି ।

ପ୍ରିଷ୍ଟଲେ ଯାହା ଲେଖୁଥିଲେ ପୁସ୍ତିକା ଆକାରରେ ଛାପି ବାଣ୍ଟୁଥିଲେ । ଥରେ ସେ ଏକ ପୁସ୍ତିକାରେ ତତ୍କାଳୀନ ପ୍ରଧାନମନ୍ତ୍ରୀଙ୍କର ତୀବ୍ର ସମାଲୋଚନା କରିଥିଲେ । ଭିନ୍ନମତାବଲମ୍ବିମାନଙ୍କ ପ୍ରତି ପ୍ରଧାନମନ୍ତ୍ରୀଙ୍କ ବ୍ୟବହାର ଭଲ ନୁହେଁ ବୋଲି ସେ ସ୍ପଷ୍ଟ ଭାବରେ ଲେଖିଥିଲେ ।

ପ୍ରିଷ୍ଟଲେ ପ୍ରଚାରକ ହେବା ଅପେକ୍ଷା ଶିକ୍ଷକତା କରିବାକୁ ମୂଳରୁ ଚାହୁଁଥିଲେ । ତେଣୁ ସେ ଚେସାୟାର ନାଣ୍ଟ୍‌ୱିକ୍ ଚର୍ଚ୍ଚକୁ ଯିବା ପରେ ସେଠାରେ ଏକ ସ୍କୁଲ ଖୋଲିଲେ । ଏଠାରେ ଉଭୟ ଝିଅ ଓ ପୁଅଙ୍କ ପଢ଼ିବାର ବ୍ୟବସ୍ଥା କରାଯାଇଥିଲା । ସକାଳ ସାତଟାଠାରୁ ଅପରାହ୍ଣ ୪ଟା ପର୍ଯ୍ୟନ୍ତ ସ୍କୁଲ ଚାଲୁଥିଲା । ନାଁ ଲେଖାଇଥିବା ୩୦ ଜଣ ଛାତ୍ର ଓ ଛଅଜଣ ଛାତ୍ରୀଙ୍କୁ ସେ ଏକା ଏକା ପଢ଼ାଉଥିଲେ । ସେ ସବୁବେଳେ ପିଲାଙ୍କୁ ଲେଖାଲେଖି କରିବା ଲାଗି କହୁଥିଲେ । 'ରବିନ୍‌ସନ୍ କ୍ରୁସୋ' ବହି ପିଲାମାନଙ୍କୁ ପଢାଇବା ଥିଲା ତାଙ୍କର ବଡ଼ ସଉକ । ସ୍କୁଲରେ ନୂଆ ନୂଆ ବିଷୟ ପଢ଼ାଯାଏ । ସ୍କୁଲ ବାହାରେ ପିଲାମାନେ ମନଇଚ୍ଛା ତାହା ପଢ଼ିବା ଉଚିତ୍ ବୋଲି ସେ ପରାମର୍ଶ ଦେଉଥିଲେ ।

ଏହି ସ୍କୁଲର ପାଠ୍ୟକ୍ରମ ଏପରି ଏକ ବିଷୟ ସେ ରଖିଥିଲେ, ଯାହାକି ଦୁଇଶହ ବର୍ଷ ତଳେ ଅନ୍ୟ ସ୍କୁଲମାନଙ୍କରେ କ୍ୱଚିତ୍ ପଢ଼ାଯାଉଥିଲା । ପ୍ରିଷ୍ଟଲେ କେତେକ ବୈଜ୍ଞାନିକ ଯନ୍ତ୍ରପାତି ଆଣି ପରୀକ୍ଷା ଓ ଗବେଷଣାଦି ଚଳାଇବା ଲାଗି ଛାତ୍ରଛାତ୍ରୀଙ୍କୁ ଶିଖାଇଲେ । ପିଲାମାନଙ୍କ ଉତ୍ସାହ ବଢ଼ିଲା । ଅଭିଭାବକମାନେ ଖୁସି ହେଲେ । ସେ ସମୟରେ ବିଜ୍ଞାନକୁ ଲୋକେ ଗୁଣିଗାରେଡ଼ି ବିଦ୍ୟା ଭଳି ବିଚାର

କରୁଥିଲେ । କାରଣ ବିଜ୍ଞାନ ଦ୍ୱାରା ନାନା ରକମର ମୌଳିକ ଭିନ୍ନ ଭିନ୍ନ ହୋଇପାରୁଥିଲା । ବିଦ୍ୟୁତ୍‌ଶକ୍ତି କ'ଣ ଲୋକେ ଜାଣି ନଥିଲେ ମାତ୍ର ଏସିଡ୍ ଓ ତାର କ୍ରିୟା ପ୍ରକ୍ରିୟା ସମ୍ପର୍କରେ ଲୋକଙ୍କର ସାମାନ୍ୟ ଜ୍ଞାନ ଥିଲା । ଗ୍ୟାସ ବୋଲି ଗୋଟିଏ ଜିନିଷ ଯେ ଅଛି, ତାହା ଜନସାଧାରଣ ଜାଣିଥିଲେ । ସେମାନେ ଜାଣିଥିଲେ ଯେ ଏପରି କେତେକ ପଦାର୍ଥ ରହିଛି, ଯାହାକୁ ଭାଙ୍ଗି ହେବନାହିଁ; ଯୁଗ ଯୁଗ ଜଳିଲେବି ନାହିଁ କିମ୍ବା ତାର ଗୁଣକୁ ବଦଳା ଯାଇ ପାରିବ ନାହିଁ । ଧାତବ ଦ୍ରବ୍ୟର ଉପାଦାନ ସମ୍ପର୍କରେ ଲୋକଙ୍କ ଜ୍ଞାନ ମଧ୍ୟ ସୀମିତ ଥିଲା । ମଧ୍ୟଯୁଗରେ ଅବଶ୍ୟ ଗବେଷଣା ହୋଇଥିଲା ଏବଂ ବିଭିନ୍ନ ବସ୍ତୁର ପ୍ରସ୍ତୁତି ସମ୍ପର୍କରେ କିଛିଟା ଜ୍ଞାନ ହାସଲ ହୋଇଥିଲା । ତଥାପି କେଉଁ ବସ୍ତୁର ଭିତ୍ତି କ'ଣ ତାହା କେହିଜାଣି ନ ଥିଲେ । ଲୋକେ ସୁନାକୁ ଏକ 'ଦାର୍ଶନିକ ପଥର' ଆଖ୍ୟା ଦେଇଥିଲେ । ସେମାନେ କହୁଥିଲେ, ସୁନା ଏକ ମୌଳିକରୁ ପ୍ରସ୍ତୁତ । ଏହି ତଥାକଥିତ ମୌଳିକ କିପରି ହେଉଛି ଏହା ଜାଣିବା ଲାଗି ପରୀକ୍ଷା ନିରୀକ୍ଷାର ବିରାମ ନ ଥିଲା । ଆଜି ନା କାଲି ସମସ୍ତ ଗୋପନୀୟ ତଥ୍ୟକୁ ଉଦ୍‌ଘାଟନ କରାଯାଇପାରିବ ବୋଲି ଗବେଷକମାନଙ୍କର ଦୃଢ଼ ବିଶ୍ୱାସ ଥିଲା । ମାତ୍ର ଗବେଷକମାନଙ୍କ ମୃତ୍ୟୁ ସହିତ ଗବେଷଣା ଶେଷ ହୋଇଯାଉଥିଲା ।

ଅବଶ୍ୟ ପ୍ରିଷ୍ଟ୍‌ଲେଙ୍କ ଉଦ୍ୟମ କେତେକାଂଶରେ ସଫଳ ହେଲା, ତଥାପି ତାଙ୍କର ଭାଷଣ, ତାଙ୍କର ସମସ୍ତ ନୂତନ ତତ୍ତ୍ୱର ଲୋକଙ୍କ ଦ୍ୱାରା ଗୃହୀତ ହୋଇପାରିଲା ନାହିଁ । ତାଙ୍କଦ୍ୱାରା ପ୍ରକାଶିତ ପୁସ୍ତିକା ଗୁଡ଼ିକ ଫଳରେ ଅନେକ କ୍ଷେତ୍ରରେ ସେ ନିନ୍ଦିତ ଓ ଅପ୍ରିୟ ହୋଇପଡ଼ିଲେ । କଳିହାଉସମାନଙ୍କର ତାଙ୍କ ବିରୁଦ୍ଧରେ

ନାନା ଚର୍ଚ୍ଚା ହେଲା । ପ୍ରିଷ୍ଟ୍‌ଲେ ଜଣେ ଭଣ୍ଡ, ଦୁଷ୍ଟ ଲୋକ ବୋଲି ଅନେକେ କହିବା ଶୁଣାଗଲା ।

ନିଜର ବିଫଳତା ଆଗରେ ନତମସ୍ତକ ହୋଇ ଶେଷରେ ପ୍ରିଷ୍ଟ୍‌ଲେ ଧର୍ମର କାର୍ଯ୍ୟକୁ ପୂର୍ବାପର ଜଳାଞ୍ଜଳି ଦେଇ ଶିକ୍ଷକତାକୁ ଗ୍ରହଣ କଲେ । ଚର୍ଚ୍ଚ ଛାଡ଼ି ଓ୍ୱାରିଂଟନ ଏକାଡେମୀରେ ଯାଇ ଶିକ୍ଷକତା କଲେ । ଏଠାରେ ଛଅବର୍ଷ କାଳ ରହିଥିଲେ । ଯଦି ବିଜ୍ଞାନ ପ୍ରତି ତାଙ୍କର ଆଗ୍ରହ ନ ଥାନ୍ତା ଏବଂ "ମେସର୍ସ ଜେକସ ଆଣ୍ଡ୍ ନେଲ୍‌ସ ବ୍ରଓ୍ୱେରୀ" କମ୍ପାନୀ ତାଙ୍କୁ ଡାକି ନ ଥାଆନ୍ତା । ତାହାହେଲେ ବୋଧହୁଏ ସେ ସାରା ଜୀବନ ଶିକ୍ଷକତା କରି କରି ଅତିବାହିତ କରିଥାଆନ୍ତେ, ନଚେତ୍ ଗୁଡ଼ିଏ ଲିଫ୍‌ଲେଟ ଲେଖି ଲେଖି ଅପ୍ରିୟ ହେବା ସାର ହୋଇଥାଆନ୍ତା ।

ସବୁ କାମରେ ପ୍ରିଷ୍ଟ୍‌ଲେଙ୍କର ଥିଲା ଅଦମ୍ୟ ଉତ୍ସାହ । ଧର୍ମ ପ୍ରଚାରରେ ଯେଭଳି, ଶିକ୍ଷକତାରେ ସେହିଭଳି । ସେ ବହୁ ରାତି ପର୍ଯ୍ୟନ୍ତ କର୍ମବ୍ୟସ୍ତ ରହୁଥିଲେ । ଲିଫ୍‌ଲେଟ ଲେଖିବା ବ୍ୟତୀତ ବିଭିନ୍ନ ପଦାର୍ଥର ଗନ୍ଧ ଓ ଗ୍ୟାସ ସମ୍ପର୍କରେ ସେ ପରୀକ୍ଷା ଚଳାଇ-ଥିଲେ । ଯାହା ଆରମ୍ଭ କରୁଥିଲେ ତାକୁ ଶେଷ ନ କରି ଛାଡ଼ୁ ନ ଥିଲେ ।

ଉଦାହରଣ ସ୍ୱରୂପ ଓ୍ୱାରିଂଟନ ଏକାଡେମୀର ଶିକ୍ଷକତା କଲାବେଳେ ସେ ତାଙ୍କର ପ୍ରଥମ ବହି "ବିଦ୍ୟୁତ ଶକ୍ତିର ଇତିହାସ" ଲେଖିଥିଲେ । ଏଭଳି ପୁସ୍ତକ ଏପର୍ଯ୍ୟନ୍ତ କେହି ଲେଖିପାରି ନ ଥାଆନ୍ତି । ଭବିଷ୍ୟତରେ ବିଦ୍ୟୁତ ଶକ୍ତିର ରୂପ କ'ଣ ହେବ, ଏହା କିପରି ଜନମଙ୍ଗଳ କାର୍ଯ୍ୟରେ ନିୟୋଜିତ ହେବ, ତାହା ସେ ଲେଖି

ପାଇଥିଲା । "ରୟାଲ ସୋସାଇଟି"ର ବୈଜ୍ଞାନିକମାନେ ଏହି ପୁସ୍ତକ ପଢ଼ିବା ମାତ୍ରେ ଖୁବ୍ ଖୁସି ହୋଇ ଉଠିଲେ ଏବଂ ତାଙ୍କର ବିଶ୍ୱବିଖ୍ୟାତ ସୋସାଇଟିର ସଭ୍ୟ ଭାବରେ ପ୍ରିଷ୍ଟ୍‌ଲେଙ୍କୁ ନିର୍ବାଚିତ କରିଥିଲେ । ସପ୍ତଦଶ ଶତାବ୍ଦୀରେ ଏହି ସଂସ୍ଥାଟି ପ୍ରତିଷ୍ଠିତ ହୋଇଥିଲା । ଇଂଲଣ୍ଡର ସମସ୍ତ ବିଖ୍ୟାତ ବୈଜ୍ଞାନିକ ଏହି ସୋସାଇଟିର ସଭ୍ୟ ଥିଲେ ।

କେତେକ ଆପତ୍ତି କଲେ ଯେ ପ୍ରିଷ୍ଟ୍‌ଲେଙ୍କ ବହିଟିର ବିଷୟବସ୍ତୁକୁ ସାଧାରଣ ଲୋକ ବୁଝିବା କଷ୍ଟକର । ପ୍ରିଷ୍ଟ୍‌ଲେ ଏହା ପରେ "ଫେମିଲିଆର ଇଣ୍ଟ୍ରଡକ୍‌ସନ" ନାମକ ଆଉ ଖଣ୍ଡିଏ ବହି ଲେଖିଲେ । ମାତ୍ର ଏଥିରେ ସେ ଯେଉଁ ଯନ୍ତ୍ରପାତି, କଳକବ୍‌ଜାର ବର୍ଣ୍ଣନା କରିଥିଲେ, ତାକୁ ଚିତ୍ର ଆକାରରେ ଦେଖାଇବା ପାଇଁ ଜଣେ ଆର୍ଟିଷ୍ଟ ପାଇଲେ ନାହିଁ । ଏହି ବହିଟିରେ ଆଉ କେତେକ ବିଷୟ ବୁଝାଇବା ଲାଗି ସେ ଆଗରୁ କିଛି ବହି ଲେଖାଯାଇଛି କି ନାହିଁ ଜାଣିବା ପାଇଁ ବହୁ ଚେଷ୍ଟା କଲେ, ମାତ୍ର ପାଇଲେ ନାହିଁ !

ସେ ବହୁ ବିଷୟରେ ଜ୍ଞାନ ଅର୍ଜନ ଲାଗି ଅଗ୍ରହୀ ଥିଲେ । କୌଣସି ନୂଆ କଥା ଶିଖି ସାରିବା ପରେ ଅନ୍ୟମାନଙ୍କ ଆଗରେ ସେ ସବୁର ବର୍ଣ୍ଣନା କରୁଥିଲେ । ପ୍ରିଷ୍ଟ୍‌ଲେ ୱାରିଂଟନ ଏକା-ଡେମୀରେ ଛଅ ବର୍ଷ ଶିକ୍ଷକତା କରିବା ପରେ ପୁଣି ଲିଡସଠାରେ ତାଙ୍କୁ ଚର୍ଚ୍ଚ ଜୀବନ ଯାପନ କରିବାକୁ ପଡ଼ିଲା । ତଥାପି ଏକାଡେମୀ ଲାବୋରେଟରୀରେ ସେ ଯେଉଁ ସବୁ କାମ କରିଥିଲେ, ଭୁଲିପାରି ନ ଥିଲେ । ଲିଡ୍‌ସ୍‌ଠାରେ ସେ ଯେଉଁଠାରେ ରହୁଥିଲେ, ଠିକ ତାଙ୍କ ପଡ଼ୋଶୀରେ ଗୋଟିଏ ମଦ ତିଆରି କାରଖାନା ଥିଲା । ଏହି

କାରଖାନାଟି ମେସର୍ସ ଜେକ୍‌ସ ଆଣ୍ଡ ଫେଲସ୍‌ କମ୍ପାନୀର । ଚର୍ଚ୍ଚ ପାଖରେ ମଦ କାରଖାନା, ଅନ୍ୟ କେହି ହୋଇଥିଲେ ନାକ ଟେକନ୍ତା । କାରଣ ଏଠାରୁ ସବୁବେଳେ ଉତ୍କଟ ଗନ୍ଧ ଆସିଥାଏ । ମାତ୍ର ପ୍ରିଷ୍ଟ୍‌ଲେ ଥିଲେ ଜଣେ ଅନୁସନ୍ଧିତ୍ସୁ । ଅଳ୍ପ କେତେଦିନ ଭିତରେ ମଦ କାରଖାନା କର୍ତ୍ତୃପକ୍ଷ ଚର୍ଚ୍ଚ ପକ୍ଷରୁ ଖଣ୍ଡିଏ ଚିଠି ପାଇଲେ । ପ୍ରଥମେ ପ୍ରଥମେ କର୍ତ୍ତୃପକ୍ଷ ଭ୍ରୂକୁଞ୍ଚନ କଲେ, ମାତ୍ର ପରେ ଚର୍ଚ୍ଚର ପ୍ରଚାରକଙ୍କୁ କାରଖାନା ପରିଦର୍ଶନ ଲାଗି ନିମନ୍ତ୍ରଣ କଲେ ।

କର୍ତ୍ତୃପକ୍ଷ ହଠାତ ପ୍ରିଷ୍ଟ୍‌ଲେଙ୍କୁ କାରଖାନା ଭିତରେ ଦେଖି ଆଚମ୍ବିତ ହୋଇପଡ଼ିଲେ । ପ୍ରିଷ୍ଟ୍‌ଲେ କାରଖାନାରେ ପଶି ମଦ କିପରି ତିଆରି ହେଉଛି ତାହା ଖୁଣ୍ଟିନାଟି ଦେଖିବାକୁ ଲାଗିଲେ । କେବଳ ମଝି ମଝିରେ କହୁଥିଲେ, "ଏପରି ଦୁର୍ଗନ୍ଧ ହେଉଛି କାହିଁକି ? ହେବା କଥା ତ ନୁହଁ ।"

କାରଖାନାର କାରିଗର କହିଲେ, "ସେ ବାଷ୍ପଟା ସେପରି ଗନ୍ଧାଏ ।"

ପ୍ରିଷ୍ଟ୍‌ଲେ ପଚାରିଲେ, "ଆଚ୍ଛା ସେ ତରଳ ଦ୍ରବ୍ୟରୁ ଏପରି ଫୋଟକା ଭଳି ବାହାରୁଛି କାହିଁକି ?"

ଉତ୍ତର ମିଳିଲା—"ସେ ବାଟେ ବାଷ୍ପ ବାହାରୁଛି, ସେଇଥିପାଇଁ ।"

ପ୍ରିଷ୍ଟ୍‌ଲେ ଚକିତ ରହିବା ଭଳି ମନେହେଲା ।

ଆସିବା ପରେ ପ୍ରିଷ୍ଟଲେଙ୍କ ମନଟା ଭାରି ଭାରି ହୋଇଆସିଲା । ଏହି ପ୍ରଥମଥର ପାଇଁ ତାଙ୍କ ମନରେ ନିଃଶ୍ୱାସ ପ୍ରଶ୍ୱାସ ସମ୍ପର୍କରେ

ଚିନ୍ତା ଆସିଲା । ନିଜକୁ ନିଜେ ପ୍ରଶ୍ନ କଲେ—ଆମେ ନିଃଶ୍ୱାସ ନେଉଛୁ କାହିଁକି ? ଆମେ ବଞ୍ଚିବା ପାଇଁ ନିଃଶ୍ୱାସ ନେଉଛୁ କାହିଁକି ? ଆମକୁ ଘଣ୍ଟାକ ଭିତରେ ହଜାରେ ଥର, ଦିନକ ଭିତରେ ୨୪ହଜାର ଥର ଏବଂ ବର୍ଷକ ଭିତରେ ପ୍ରାୟ ୪ ଶହ ହଜାର ଥର ନିଃଶ୍ୱାସ ପ୍ରଶ୍ୱାସ ନେବାକୁ ପଡୁଚି । ଆମକୁ ଯଦି ୭୦ ବର୍ଷ ବଞ୍ଚିବାକୁ ପଡ଼େ ତାହାହେଲେ ଆମକୁ ୨୮୦ ଲକ୍ଷ ଥର ନିଃଶ୍ୱାସ ନେବାକୁ ପଡ଼ିବ । ପବନ ବା ବାୟୁ—ଇଏ କି ଜିନିଷ ? ଏହାର ରହସ୍ୟ କ'ଣ ? ବଞ୍ଚିବା ପାଇଁ ଏହାର ଆବଶ୍ୟକତା କାହିଁକି । ସେ କାରଖାନାର ଚିମ୍‌ନିକୁ ଚାହିଁଲେ । ଧୂଆଁ ବାହାରୁଚି । ଏହି ଧୂଆଁ ଯେତେ ଉପରକୁ ଉଠୁଚି ଦେଖିବାକୁ ସେତେ ସହଜ ହେଉଛି । ଧୂଆଁ ମଧ୍ୟ ପବନର ଏକ ଅଂଶ-ବିଶେଷ । ପ୍ରିଷ୍ଟ୍‌ଲେଙ୍କ ମନରେ ନାନା ଦ୍ୱନ୍ଦ୍ୱ ଦେଖାଦେଲା । ଅନ୍ୟମାନଙ୍କ ଧାରଣା ଯେ, ପବନ ଗୋଟାଏ ସାଧାରଣ ଜିନିଷ । ପୂର୍ବରୁ ବୈଜ୍ଞାନିକଙ୍କ ମତରେ ପବନକୁ ଭାଗ ଭାଗ କରିହେବ ନାହିଁ । ଏହା ଯେପରି ମୌଳିକ, ସେହିଭଳି ହିଁ ରହିଛି, ରହି-ଥିବ । ପ୍ରିଷ୍ଟ୍‌ଲେଙ୍କ ମନରେ ପ୍ରଶ୍ନ ଉଠିଲା—ଯଦି ମେସିନ ଯନ୍ତ୍ରପାତିକୁ ଆମେ ଅଲଗା ଅଲଗା କରି ବାନ୍ଧି ପାରୁଛେ, ପବନକୁ ସେପରି ବାନ୍ଧି ପାରିବା ନାହିଁ କାହିଁକି । ଆମେ କେତେକ ସ୍ୱଚ୍ଛ ଗ୍ୟାସକୁ ଏକାଠି କରି ନ ପାରିବା କାହିଁକି ?

ଘରକୁ ଫେରିଆସିଲେ ପ୍ରିଷ୍ଟ୍‌ଲେ । ସ୍ଥିର କଲେ ସବିଶେଷ ପରୀକ୍ଷା ଚଳାଇବେ ।

ସେ ତାଙ୍କ ବୈଜ୍ଞାନିକ ବନ୍ଧୁ ମିଃ ରିଗ୍‌ଭର୍ଡ଼ଙ୍କୁ କହିଲେ, "ତୁମେ ଅନ୍ଧ । ତୁମେ କେବଳ ନୁହଁ, ସବୁ ବୈଜ୍ଞାନିକ । ଶହ

ଶହ ବର୍ଷ ଧରି ବୈଜ୍ଞାନିକମାନେ ମୂଳ ଧାତୁକୁ ସୁନାରେ ପରି-ଣତ କରିବା ପାଇଁ ଉଦ୍ୟମ କରି ଆସିଛନ୍ତି । ମାତ୍ର ଭଗବାନଙ୍କର ସବୁଠାରୁ ବଡ଼ ରହସ୍ୟ ଯାହା, ସେଥିପ୍ରତି କେହି ଦୃଷ୍ଟି ଦେଇ ନାହାନ୍ତି ।"

ଫ୍ରିଷ୍ଟ୍ଲେ କହିଲେ, "ତୁମେ କଲିକତାର 'ଅନ୍ଧକୂପ' ଘଟଣା କ'ଣ ଜାଣ । ସେଠାରେ ୧୦୬ଜଣ ଲୋକଙ୍କୁ ଭର୍ତ୍ତି କରି ଦିଆଯାଇ ଘରଆଡ଼ ବନ୍ଦ କରି ଦିଆଗଲା । ସେମାନେ ରାତିସାରା ସେଠାରେ ରହିଲେ । ତା' ଆରଦିନ ସକାଳେ କବାଟ ଖୋଲି ଦେଖାଗଲା ମାତ୍ର ୨୩ ଜଣ ବଞ୍ଚିଛନ୍ତି, ଅନ୍ୟ ସମସ୍ତେ ମରିଯାଇଛନ୍ତି ।

ରିଷ୍ଟର୍ଡ଼ କହିଲେ, "ଜାଣେ ।"

ଫ୍ରିଷ୍ଟ୍ଲେ କହିଲେ, "କାହିଁକି ମଲେ ଜାଣ ? ଯେଉଁ ବାୟୁ ନିଃଶ୍ୱାସ ପ୍ରଶ୍ୱାସ ଦ୍ୱାରା ଗ୍ରହଣ କରାଯାଇ ଛଡ଼ାଯାଏ, ଯାହା ଜୀବନ ରକ୍ଷା କରିଥାଏ, ସେହି ବାୟୁ ଆଉ ସେ ଘରେ ମିଳି ପାରିଲା ନାହିଁ । ଏହି ବାୟୁ ହେଉଛି ଜୀବନରକ୍ଷାର ପ୍ରଧାନ ଶକ୍ତି । ଏହି ଶକ୍ତିର ରହସ୍ୟ ଭେଦ କରିବାକୁ ହେଲେ ଜୀବନଟା କ'ଣ ଜାଣିବାକୁ ପଡ଼ିବ ।"

ରିଷ୍ଟର୍ଡ଼ କହିଲେ, "ଭଗବାନଙ୍କ ରହସ୍ୟକୁ ଜାଣିବ କିପରି ? ବୃଥା ଚେଷ୍ଟା କରନାହିଁ ।"

ଫ୍ରିଷ୍ଟ୍ଲେ ହସିଲେ, "ତାକୁ ଜାଣିବାର ଅଧିକାର ଆମର ଅଛି । ବାୟୁର ଶକ୍ତି ଏବଂ ଏହି ଶକ୍ତିର ରହସ୍ୟ ଜାଣିବା ପାଇଁ ସକ୍ଷମ ହେବି ବୋଲି ମୋର ବିଶ୍ୱାସ ।"

ଋଦର୍ଫୋର୍ଡ଼ କହିଲେ, "ଏଥିଲାଗି ଏକ ସୁସଜ୍ଜିତ ଲାବୋରେ-ଟାରୀ ଦରକାର ।"

ଫ୍ରିଷ୍ଟ୍‌ଲେ ଉତ୍ତର ଦେଲେ, "ଲାବୋରେଟାରୀ ତ ମୋର ନିକଟରେ ଅଛି ।"

"କେଉଁଠି ।

"ଜେକ୍‌ସ ଆଣ୍ଡ ନେଲ୍‌ସଙ୍କ ମଦ କାରଖାନାରେ ।"

ଏହି ମଦ୍ କାରଖାନାରେ ହିଁ ପ୍ରିଷ୍ଟ୍‌ଲେଙ୍କ ପ୍ରଥମ ପରୀକ୍ଷା ଆରମ୍ଭ ହୋଇ ହେଲା ।

ବାୟୁ ହେଉଛି ପ୍ରିଷ୍ଟ୍‌ଲେଙ୍କର ଗୋଟିଏ ଜଡ଼େଇ ଆରମ୍ଭ ହୋଇଗଲା । ବାୟୁ ନିଜ ଶକ୍ତି ରହସ୍ୟ ଜଣାଇବା ପାଇଁ ନାରାଜ । ପ୍ରିଷ୍ଟଲେ ତାକୁ ସହଜେ ଛାଡ଼ିବା ପାଇଁ ମଧ୍ୟ ପ୍ରସ୍ତୁତ ନୁହନ୍ତି ।

ସେ ସମୟରେ ନାବିକମାନେ ସମୁଦ୍ରରେ ବହୁ ଦୂରକୁ ଯାଇପାରୁ ନ ଥିଲେ, କାରଣ ସେମାନେ ସଜ ଖାଦ୍ୟ କେଣି ସମସ୍ତ ପାଇଁ ରଖି ପାରୁ ନ ଥିଲେ । ତା ଛଡ଼ା ସମୁଦ୍ରରେ ଏକ ପ୍ରକାର ରୋଗ ଧରେ, ଯାହା କ ସହଜେ ଛାଡ଼େ ନାହିଁ । ଏଥିପାଇଁ ବହୁ ରକମର ଔଷଧ ପ୍ରସ୍ତୁତ ହେଲା, ମାତ୍ର କିଛି ଧରିଲା ନାହିଁ । ପ୍ରିଷ୍ଟ୍‌ଲେ ଦେଖିଲେ ମାଟି ଭିତରୁ ଯେଉଁ ପାଣି ତା' ମନକୁ ଉତ୍ସ ଆକାରରେ ବାହାରୁଛି କମ୍ବା ଝରଣା ହୋଇ ବାହାରୁଛି, ସେ ପ୍ରକାରର ପାଣି ଏହି ରୋଗକୁ ଭଲ କରି ଦେଇପାରେ । ଏହି ପାଣିରୁ ଯଦି କିଛି କିଛି ବୋତଲରେ କମ୍ବା ଅନ୍ୟ କୌଣସି ଆବଦ୍ଧ ପାତ୍ରରେ ନାବିକମାନେ ନିଅନ୍ତି, ତାହାହେଲେ ସେମାନ-ଙ୍କର ନିଷ୍ଟୟ ଉପକାର ହୁଅନ୍ତା । ୧୭୭୨ରେ ପ୍ରିଷ୍ଟ୍‌ଲେ ମଦ

ଲଭୋସିଅର ପଚାରିଲେ, 'ଆଚ୍ଛା, ପ୍ରିଷ୍ଟ୍‌ଲେ ସାହେବ; କହନ୍ତୁ ତ କ'ଣ ସବୁ ପରୀକ୍ଷା କଲେଣି ?' ପ୍ରିଷ୍ଟ୍‌ଲେ ସବୁ ବିଷୟ ଜଣାଇଲେ ।

ଲଭୋସିଅର ପଚାରିଲେ, ଆପଣ ଏହି ଗ୍ୟାସର ନାମକରଣ କ'ଣ କରିଛନ୍ତି ?'

'ନାଁ । କ'ଣ ହେବ ସିଏ ଏକ ସମସ୍ୟା ।' ପ୍ରିଷ୍ଟ୍‌ଲେ ଉତ୍ତର ଦେଲେ । ପୁଣି କହିଲେ, 'ଯାବତ ଯେହେତୁ ବାୟୁର ଫ୍ଲୋଜିଷ୍ଟନ ବାହାର କରି ନିଆଯାଇଛି, ତେଣୁ ତାର ନାଁ । ରଖିବ 'ଡିଫ୍ଲୋଜି-କେଟେଡ ଏୟାର ।'

ହସିଉଠିଲେ ଲାଭୋସିଅର । 'ଅଦ୍ଭୁତ ନାମ । 'ଫ୍ଲୋଜିଷ୍ଟନ୍' ବୋଲି କ'ଣ କିଛି ଅଛି ? ଏହା କେବଳ ଭୂତ-ପ୍ରେତଙ୍କ କାହାଣୀ ବହିରୁ ପଢ଼ିବାକୁ ମିଳିଥାଏ । ଗୁଣିଗାରେଡ଼ି କଥା ।'

ପ୍ରିଷ୍ଟ୍‌ଲେ ଟିକିଏ ରାଗିଗଲା ଭଳି ମନେ ହେଲା । କହିଉଠିଲେ, 'ଆପଣ ମତେ ଅପମାନିତ କରିବାକୁ ଚାହାଁନ୍ତି ।' ଉଭୟଙ୍କ ଖାଇବା ପ୍ରାୟ ବନ୍ଦ ହୋଇଗଲା । ଜଣାପଡ଼ିଲା ଘୋରତର ବାକ୍‌ଯୁଦ୍ଧ ।

ମାତ୍ର ଜଣେ ଫରାସୀ ଲୋକଙ୍କ ହସ୍ତକ୍ଷେପ ଫଳରେ ସବୁ ସମାଧାନ ହୋଇଗଲା ।

ଖିଆପିଆ ସରିବା ପରେ ସେହି ଫରାସୀ ଲୋକ ଜଣକ ପ୍ରିଷ୍ଟ୍‌ଲେଙ୍କ ପାଖକୁ ଆସି କହିଲେ, 'କ୍ଷମା କରିବେ ଡକ୍ଟର ପ୍ରିଷ୍ଟ୍‌ଲେ । ଲାଭୋସିଅରଙ୍କଠାରୁ ଆପଣ ଯେଉଁ ଅପମାନ ପାଇଲେ ସେଥିଲାଗି ଆମେ ସମସ୍ତେ ଦୁଃଖିତ । ଡକ୍ଟର ଲାଭୋସିଅର ଅବଶ୍ୟ ଜଣେ ପ୍ରସିଦ୍ଧ ବୈଜ୍ଞାନିକ, ମାତ୍ର ତାଙ୍କ ବ୍ୟବହାର ଭଲ ନୁହେଁ ।'

ପ୍ରିଷ୍ଟ୍‌ଲେ ଏହି ଫରାସୀ ଜଣକର ପରିଚୟ ଜାଣିବାକୁ ଗୃହିଁବାରେ ସେ କହିଲେ, 'ମୋ ନାଁ ଲାଭୋଇସ୍ । ମୁଁ ଜଣେ କେମିଷ୍ଟ, ରସାୟନବିଦ୍ । ଆପଣ ଲାଭୋସିଅରଙ୍କୁ ଗ୍ୟାସ୍ ସମ୍ପର୍କରେ ଯାହାସବୁ କହିଲେ, ମୁଁ ଶୁଣିଚି ; ଆପଣ ଯେଉଁ ସମସ୍ୟା ଉତ୍‌ଥାପନ କରିଛନ୍ତି, ମୁଁ ତାର ସମାଧାନ କରିଦେଇ-ପାରେ ।'

ପ୍ରିଷ୍ଟ୍‌ଲେ ତାଙ୍କୁ ଆଗ୍ରହର ସହିତ ଗୃହିଁରହିଲେ ।

ଲାଭୋଇସ କହିଲେ, 'ଆପଣ ପରୀକ୍ଷା ଲାଗି ଯେଉଁ ପାରଦ ବା ମାର୍‌କ୍ୟୁରିଅସ କାଲ୍‌ସିନାଟ୍‌ସ ବ୍ୟବହାର କରିଛନ୍ତି ତାହା ଆଦୌ ଖାଣ୍ଟି ନୁହେଁ ।'

ପ୍ରିଷ୍ଟ୍‌ଲେ କହିଲେ, 'ମୁଁ ମୋର କେମିଷ୍ଟଙ୍କୁ ବାରମ୍ବାର ଏକଥା ପଚାରିଥିଲି । ସେ କହିଲେ, ସେ ଯେଉଁ ପାରଦଗୁଣ୍ଡ ଦେଇଛନ୍ତି ତାହା ଖାଣ୍ଟି ।'

ଲାଭୋଇସ କହିଲେ, 'ଆଚ୍ଛା ମୁଁ ନିଜ ହାତରେ ସେଥିରୁ କେତେକ ଗୁଣ୍ଡ ପ୍ରସ୍ତୁତକରି ଆପଣଙ୍କୁ ଦେଉଛି । ସେଗୁଡ଼ିକ ନିଶ୍ଚୟ ଖାଣ୍ଟି । ଆପଣ ଘରକୁ ଯାଇ ପରୀକ୍ଷା କରନ୍ତୁ । ଯଦି ସେହି ଫଳ ପାଆନ୍ତି, ମତେ ଜଣାଇବେ । କିନ୍ତୁ ମୁଁ ନିଶ୍ଚିତ ଯେ ଗ୍ୟାସ ବାହାରିବ ନାହିଁ ।'

ତା' ଆରଦିନ ପ୍ରିଷ୍ଟ୍‌ଲେ ପ୍ରସ୍ତୁତ ଗୁଣ୍ଡ ନେଇ ସ୍ୱଦେଶକୁ ଫେରିଲେ । ସଙ୍ଗେ ସଙ୍ଗେ ଲାବରେଟୋରୀ ଭିତରେ ପଶି ଗୁଣ୍ଡ-ତକକୁ ପରୀକ୍ଷା ଲାଗି ବାହାର କଲେ । ଯେମିତି ଲୁଗାପଟା ପିନ୍ଧି ପରୀକ୍ଷା ଲାଗି ପ୍ରସ୍ତୁତ ହେଲେ । ଠିକ୍ ପୂର୍ବ ଫଳ ମିଳିଲା । ସେ ନିଶ୍ଚିତ ହେଲେ ଯେ, ସେ ଗୋଟିଏ ଆବିଷ୍କାର କରିପାରିଛନ୍ତି । ଏହି ଗ୍ୟାସ୍ ବାୟୁଠାରୁ ମଧ୍ୟ ସ୍ୱଚ୍ଛ । ଅତି ଗୁରୁତ୍ୱପୂର୍ଣ୍ଣ । ଏହା ହିଁ ପ୍ରକୃତ ଜୀବନୀଶକ୍ତି

ପ୍ରଥମେ ଗନ୍ଧ ଦେହରେ ପରୀକ୍ଷା କଲେ । ତା’ପରେ ମୂର୍ଷା ଦେହରେ ।

ପ୍ରତି ମୁହୂର୍ତ୍ତରେ ଲର୍ଡ଼ସେଲବର୍ଣ୍ଣ ତାଙ୍କୁ ଉତ୍ସାହିତ କରୁଥାଆନ୍ତି । ସେ ପର୍ଯ୍ୟବେକ୍ଷଣ କଲେ, ନୂତନ ଆବିଷ୍କୃତ ଗ୍ୟାସ୍ ସମ୍ପର୍କରେ ସଙ୍ଗେ ସଙ୍ଗେ ଖଣ୍ଡିଏ ବହି ଲେଖି ପକାନ୍ତୁ ।

ପ୍ରିଷ୍ଟଲେ କହିଲେ, “ଆପଣ ଯାହା କହୁଛନ୍ତି ସତ କଥା । ମାତ୍ର ବହି ପ୍ରକାଶ କରିବା ପୂର୍ବରୁ ମୁଁ ଆଜ ଏକ ପରୀକ୍ଷା କରିବାକୁ ଚାହେଁ । ସେଥିଲାଗି ଆପଣଙ୍କ ସାହାଯ୍ୟ ଲୋଡ଼ା ।”

“ମୁଁ ପ୍ରସ୍ତୁତ, ଆପଣ କ’ଣ ଚାହୁଁଛନ୍ତି ?” ସେଲ୍‌ବର୍ଣ୍ଣ ପଚାରିଲେ ।

“ମୁଁ ଗ୍ୟାସକୁ ଶୁଙ୍ଘି ନିଶ୍ୱାସରେ ନେବାକୁ ଚାହେଁ ।”

ସେଲବର୍ଣ୍ଣ କହିଲେ, “ନା, ନା, ତା ହୋଇପାରେନା । ବିପଦ ଆସିପାରେ ।”

ପ୍ରିଷ୍ଟଲେ କହିଲେ, “ମୁଁ ସେ ବିପଦ ଆନନ୍ଦରେ ବରଣ କରିବାକୁ ଚାହେଁ । ମୁଁ ଏହି ଗ୍ୟାସର ପ୍ରତିକ୍ରିୟା କ’ଣ ଜାଣିବାକୁ ଚାହୁଁଛି । ତେଣୁ ଏହାକୁ ଶୁଙ୍ଘିଲେ ଯିନା ଜାଣିବ ।”

ଲର୍ଡ଼ ସେଲବର୍ଣ୍ଣ ଖୁବ ଉଦ୍‌ବିଗ୍ନ ହୋଇପଡିଲେ । ସେ ଆଗରୁ ଥରେ ଦେଖିଛନ୍ତି । ପରୀକ୍ଷା କରୁ କରୁ ପ୍ରିଷ୍ଟଲେଙ୍କ ହାତ ଝଣ୍ଟିଆ ହୋଇଗଲା । ପରୀକ୍ଷା ଭୁଲ ମଧ୍ୟ ହୋଇ ଯାଇପାରେ । ସେଥର ହାତ ଯିନା ଖଣ୍ଡିଆ ହେଲା, ହୁଏତ ଏଥର ଜୀବନ ଚାଲିଯାଇପାରେ । ତେଣୁ ସେ ଏହି ଆଘ୍ରାଣ କାର୍ଯ୍ୟ ନ କରିବା ଲାଗି ପ୍ରିଷ୍ଟଲେଙ୍କୁ ବହୁତ ବୁଝାଇଲେ । ମାତ୍ର ପ୍ରିଷ୍ଟଲେଙ୍କ ଏକା ଜିଦ୍ ସେ

ଗ୍ୟାସକୁ ଶୁଙ୍ଘିବେ । ଶେଷରେ ସେଲବର୍ଣ୍ଣ ଏହି ପରୀକ୍ଷା କାର୍ଯ୍ୟରେ ତାଙ୍କୁ ସାହାଯ୍ୟ କରିବାକୁ ରାଜି ହେଲେ । ପ୍ରିଷ୍ଟଲେ ଗ୍ୟାସ ଥିବା ଯନ୍ତ୍ରଟିକୁ ଏକ କାଚନଳୀ ସହିତ ଲଗେଇ ଗାଧ ସେପରି ତାଙ୍କ ନାକ ଓ ପାଟି ଦେଇ ଯାଇପାରିବ ସେହିଭଳି ବ୍ୟବସ୍ଥା କଲେ । ଶୋଇବା ଅବସ୍ଥାରେ ତାଙ୍କ ମୁହଁରେ ଏସବୁ ଯନ୍ତ୍ରପାତି ଖଞ୍ଜାଗଲା । କଥା ହେଲା ପ୍ରିଷ୍ଟଲେ ସଙ୍କେତ ନଦେବା ପର୍ଯ୍ୟନ୍ତ ସେଲବର୍ଣ୍ଣ ତାଙ୍କ ପାଟି ଓ ନାକ ଭିତରକୁ ଗ୍ୟାସ ଯୋଗାଇବେ । ଗ୍ୟାସ କାଚନଳୀ ଭିତରକୁ ଆସିଲା । ସେଲବର୍ଣ୍ଣ ଉଦ୍‌ବିଗ୍ନ ଭାବରେ ପ୍ରିଷ୍ଟଲେଙ୍କୁ ଚାହିଁ ରହିଥାଆନ୍ତି । ପ୍ରିଷ୍ଟଲେ ଗ୍ୟାସକୁ ଆଘ୍ରାଣ କରିବାରେ ଲାଗି ଥାଆନ୍ତି । ସେଲବର୍ଣ୍ଣ ତାଙ୍କ ନାଡ଼ିର ଗତିକୁ ଲକ୍ଷ୍ୟ କରୁଥାଆନ୍ତି । ନାଡ଼ିର ଗତି ପୂର୍ବ ଅପେକ୍ଷା କ୍ଷିପ୍ର ହେବାକୁ ଲାଗିଲା । କ୍ରମଶଃ ପ୍ରିଷ୍ଟଲେ ଅଧିକ ଓ ଶୀଘ୍ର ନିଶ୍ୱାସ ନେବାକୁ ଲାଗିଲେ । ସେଲବର୍ଣ୍ଣ ଭୀତତ୍ରସ୍ତ ହୋଇପଡ଼ିଲେ । ଦେଖିଲେ, ପ୍ରିଷ୍ଟଲେ ଏକାବେଳକେ ସଂଜ୍ଞାହୀନ । ସଙ୍ଗେ ସଙ୍ଗେ ଗ୍ୟାସ ଯୋଗାଣ ବନ୍ଦ କରିଦେଇ ସେଲବର୍ଣ୍ଣ ପ୍ରିଷ୍ଟଲେଙ୍କ ମୁହଁରେ ପାଣି ଛିଞ୍ଚିଲେ । ପ୍ରିଷ୍ଟଲେଙ୍କ ସଂଜ୍ଞା ଫେରି ଆସିଲା ।

ସେଲବର୍ଣ୍ଣ ପଚାରିଲେ, "ଆପଣ ଭଲ ଅଛନ୍ତି ତ ?"

ପ୍ରିଷ୍ଟଲେ କହିଲେ, "ଖୁବ୍ ଭଲ ଅଛି । ଆଜି ଏକ ଚମତ୍କାର ପରୀକ୍ଷାରେ ଉତ୍ତୀର୍ଣ୍ଣ ହେଲି ।"

"କ'ଣ ସବୁ ଘଟିଲା କହିଲେ ?"

"ନିଶ୍ୱାସ ନେବା ଅଧିକ ସହଜବୋଧ ହେଲା । ପ୍ରଥମେ ପ୍ରଥମେ ସେପରି କୌଣସି ବିଶେଷ ପରିବର୍ତ୍ତନ ବୋଧ କଲିନାହିଁ । ମାତ୍ର କ୍ରମଶଃ ଅନୁଭବ କଲି, ନିଃଶ୍ୱାସ ନେବା ଖୁବ ସହଜ ବୋଧ

ହେଉଛି । କେଉଁଠା ଘର ଉଣ୍ଣାସିଆ, ହାଲୁକା ଲାଗିଲା । ମଦ ପିଇଲା ପରେ ଯେପରି ମୁଣ୍ଡଟା ଫାଙ୍କା ଫାଙ୍କା ଲାଗେ, ସେହିଭଳି ଲାଗିଲା ।"

"କିନ୍ତୁ ଆପଣ ଯେ ସଂଜ୍ଞାହୀନ ହୋଇପଡ଼ିଲେ ।"

"ତା'ର କାରଣ ମୁଁ ଖୁବ୍ ଜୋରରେ ନିଃଶ୍ୱାସ ନେଇ ମୋ ଫୁସ୍‌ଫୁସ୍‌କୁ ଗ୍ୟାସରେ ଭର୍ତ୍ତି କରିଦେଲି । ମୁଁ ଭାବୁଚି, ଏହି ଗ୍ୟାସକୁ ଔଷଧ ରୂପେ ବ୍ୟବହାର କରାଯାଇପାରିବ । ରୋଗୀ ବା ଆହତ ବ୍ୟକ୍ତିମାନଙ୍କ ପକ୍ଷରେ ନିଃଶ୍ୱାସ ପ୍ରଶ୍ୱାସ ନେବାରେ ଅନେକ ଥର କଷ୍ଟ ହୋଇଥାଏ । ଆପଣ ମଧ୍ୟ ଲକ୍ଷ୍ୟ କରିଥିବେ । ସେମାନଙ୍କ ପାଇଁ ଏହି ଗ୍ୟାସ୍ ବହୁତ ଉପକାରରେ ଆସିବ । ମାତ୍ର ସୁସ୍ଥ ଲୋକ ପକ୍ଷରେ ଏହାର ଆବଶ୍ୟକତା ଅଛି କି ନାହିଁ ମୋର ସନ୍ଦେହ ହେଉଛି ।"

ଏହାପରେ ସେ ଖଣ୍ଡିଏ ବହି ଲେଖିଲେ । ବିଭିନ୍ନ ବାୟୁକୁ ନେଇ ପର୍ଯ୍ୟବେକ୍ଷଣ ଓ ପରୀକ୍ଷା ସମ୍ପର୍କରେ ଏହି ବହିଟି ଲେଖାଗଲା । ଏହା ଛଅଟି ଗ୍ରନ୍ଥରେ ବିଭକ୍ତ । ପ୍ରଥମ ଗ୍ରନ୍ଥଟି ପ୍ରକାଶିତ ହେଲା ୧୭୭୪ରେ । ଏହି ଗ୍ରନ୍ଥଟି ଲର୍ଡ ସେଲବର୍ଣ୍ଣଙ୍କୁ ଉତ୍ସର୍ଗ କରାଯାଇଛି । ଶେଷଗ୍ରନ୍ଥଟି ପ୍ରକାଶିତ ହେଲା ୧୭୮୬ରେ । ପ୍ରିଷ୍ଟ୍‌ଲେ ଯାହା ଭାବନ୍ତି, ଯାହା କରନ୍ତି ତାକୁ ସେ ଠିକଣଠି ଭାବରେ ଏବଂ ଅତି ନିଷ୍ଠାର ସହିତ ଲେଖି ଯାଉଛନ୍ତି । ଯାହା ଭୁଲ କରନ୍ତି ଲେଖିଛନ୍ତି, ଯାହା ଠିକ କରନ୍ତି ତାହା ମଧ୍ୟ ଲେଖିଛନ୍ତି । ସେ ଲେଖିଛନ୍ତି, "ଭବିଷ୍ୟତରେ ଏହି ବାୟୁ ହିଁ ହୁଏତ ବିଳାସ ସାମଗ୍ରୀରେ ପରିଣତ ହୋଇପାରେ । ଏହାକୁ ପ୍ରଥମେ ଆଘ୍ରାଣ କରିଛି ମୁଁ ଓ ମୋର ପାଳିତ ମୂଷା ।"

ପୂର୍ବରୁ ବନ୍ଦ ମିଥ୍ୟା ଭିତରୁ ସେ ସେକାଳର ପୁରୁଣାକାଳିଆ ଯନ୍ତ୍ରପାତି ସାହାଯ୍ୟରେ ଏହି ବାଷ୍ପ ବା ଗ୍ୟାସକୁ ଆବିଷ୍କାର କରିଥିଲେ । ସେ ଯାହାକୁ ଡ଼ିଫ୍ଲୋଜିଷ୍ଟିକେଟେଡ ଏୟାର୍ ବୋଲି କହୁଥିଲେ, ପରେ ତାର ନାମକରଣ ହେଲା ଅକ୍ସିଜେନ ବା ଅମ୍ଳଜାନ ।

ଏହାକୁ ପ୍ରଥମେ ଲାଭୋସିଅର ଆବିଷ୍କାର କରିଥିଲେ ବୋଲି ଫ୍ରାନ୍ସ ପକ୍ଷରୁ ପ୍ରଚାର କରାଗଲା । କାରଣ ସେ ଆଗରୁ କେତେକ ଗ୍ରନ୍ଥ ଲେଖିସାରିଥିଲେ ଏବଂ ଗ୍ୟାସର ନାମକରଣ 'ଅକ୍ସିଜେନ' ରଖିଥିଲେ । ଅକ୍ସିଜେନ ଶବ୍ଦଟିକୁ ସେ ଗ୍ରୀକ୍ ଶବ୍ଦରୁ ଆଣିଥିଲେ । ଏହି ଗ୍ୟାସର ଆବିଷ୍କର୍ତ୍ତା ପ୍ରକୃତରେ କିଏ, ଏ ସମ୍ପର୍କରେ ଖୁବ୍ ବାକ୍‌ବିତଣ୍ଡା ଚାଲିଲା । ଲାଭୋସିଅରଙ୍କ ମୃତ୍ୟୁ ପର୍ଯ୍ୟନ୍ତ ଏ ତର୍କ-ବିତର୍କ ଚାଲିଥିଲା । ଲାଭୋସିଅର ଫରାସୀ ବିପ୍ଳବବେଳେ ମୃତ୍ୟୁ-ଦଣ୍ଡର ଶିକାର ହେଲେ । ୧୭୯୪ରେ ଲାଭୋସିଅରଙ୍କୁ ଫାଶୀ ଦିଆଗଲା ।

ସେତେବେଳକୁ ସେ ନିଜ ଦେଶରୁ ନିର୍ବାସିତ ହୋଇ ଆଟ୍-ଲାଣ୍ଟିକ୍ ମହାସାଗର ଭିତରେ ଥାଆନ୍ତି । ସେ ଥିଲେ ସେତେ-ବେଳେ ବ୍ରିଟେନ୍‌ର ସବୁଠୁ ପ୍ରସିଦ୍ଧ ବୈଜ୍ଞାନିକ । ତାଙ୍କ ଆବିଷ୍କାର ଲାଗି ବ୍ରିଟେନ୍‌ବାସୀ ଅଭିନନ୍ଦନ କରିବା ଦୂରେ ଥାଉ, ଘୃଣା କଲେ । ଶେଷରେ ନିର୍ବାସିତ ହେଲେ ।

ଘଟଣାଟି ଘଟିଲା । ୧୭୯୧ ଖ୍ରୀଷ୍ଟାବ୍ଦରେ । ବୋଉଡ ଲାଇ-ବ୍ରେରୀରେ ହଠାତ୍ ସେଲ୍‌ବର୍ଣ୍ଣଙ୍କ ଜଣେ ବନ୍ଧୁ ମିଃ ଭାଉଗାନଙ୍କ ସହିତ ତାଙ୍କର ଦେଖାହେଲା ।

ଘଉଜଗାଣ ଦେଖିବାକୁ ବେଶ୍ ଲମ୍ବା ଚଉଡ଼ା । ଖଣ୍ଡାଧାର ପରି ନାକ । ଲାଇବ୍ରେରୀ ଘରେ ପ୍ରିଷ୍ଟ୍‌ଲେଙ୍କ ସହିତ ତାଙ୍କର ପ୍ରଥମ ସାକ୍ଷାତ ।

ପ୍ରିଷ୍ଟ୍‌ଲେ ନମ୍ର ଭାବରେ ହସ୍ତମର୍ଦ୍ଦନ କରିବାକୁ ଚାହିଁ-ଦେଲେ ଘଉଜଗାଣ ହାତ ବଢ଼ାଇ କହିଲେ, 'ମୁଁ ଲଣ୍ଡନରୁ ଆସିଛି । କେବଳ ଆପଣଙ୍କ ସହିତ କଥାବାର୍ତ୍ତା କରିବା ପାଇଁ ।' କହି ଟେବୁଲ୍‌ର ବୁଲି କୁଆଡ଼େ ଯାଉଛନ୍ତି ସେତକ ମଧ୍ୟ ପଚାରିବାକୁ ସେ ଭୁଲିଗଲେ ।

ପ୍ରିଷ୍ଟ୍‌ଲେ କହିଲେ, 'କ'ଣ ଜାଣିବାକୁ ଚାହାଁନ୍ତି କହନ୍ତୁ ।'

ଘଉଜଗାଣ କହିଲେ, 'ଗତ କାଲି ମୁଁ ଆପଣଙ୍କର ଖଣ୍ଡିଏ ନୂଆ ବହିର ପ୍ରୁଫ୍ ଦେଖୁଥିଲି । ବହିଟାରେ ଗୁଡ଼ାଏ ବାଜେ ମିଛ କଥା ଲେଖାଯାଇଛି । ଲୋକଙ୍କୁ ଭୁଆଁ ବୁଲେଇବା ପାଇଁ ଆପଣ ଉଦ୍ୟମ କରୁଛନ୍ତି । ଦୁନିଆଁର ସମସ୍ତେ ଯେ ମୂର୍ଖ, ଏକଥା ମନେକରନ୍ତୁ ନାହିଁ ।'

ପ୍ରିଷ୍ଟ୍‌ଲେ ବିଚଳିତ ନ ହୋଇ କହିଲେ, 'ମୁଁ ଯାହା ଲେଖିଛି ସବୁ ସତ । ଆପଣ ଏକମତ ହୋଇ ନ ପାରନ୍ତି । ମୁଁ ନିଜକୁ ଖୁସି କରିବା ପାଇଁ ବହି ଲେଖିଛି । ସେଥିରେ ଯଦି ଅନ୍ୟମାନେ ଖୁସି ହୁଅନ୍ତି ତ ଭଲ, ଖୁସି ନ ହେଲେ ମଧ୍ୟ ମୋର କିଛି ଯାଏ ଆସେ ନାହିଁ ।'

ଘଉଜଗାଣ ଓଠକୁ ଚାପି କହିଲେ, 'ତାହାହେଲେ ଆପଣ କ'ଣ କହିବାକୁ ଚାହାଁନ୍ତି ଭଗବାନ ନାହାନ୍ତି ? ଆତ୍ମା ବୋଲି କିଛି ନାହିଁ ? ତୁମେ ଜଣେ ଚେଷ୍ଟାରେ ଭଗବାନଙ୍କ ରହସ୍ୟକୁ ଜାଣି

ଚଳନ୍ତି କ'ଣ ସବୁ ବାହାର କରନ୍ତ ବୋଲି ନିଜକୁ ଭଗବାନ ମନେ କରିବା ଅନୁଚିତ ।

ପ୍ରିଷ୍ଟଲେ ଏହି ରାଗୀ ଲୋକଟାର କଥାରୁ ବୁଝି ପାରିଲେ ଯେ ଏହାଙ୍କ ଭିତରେ ସଂସାରରେ ନିଶ୍ଚୟ ବହୁ ଲୋକ ଅଛନ୍ତି, ଯେଉଁମାନଙ୍କ ଧାରଣା ହେଉଛି ବିଜ୍ଞାନ ଏକ ରାକ୍ଷସ, ଭୂତ-ପ୍ରେତର କାମ ଏବଂ ଯିଏ ଏଥିରେ ମୁଣ୍ଡ ଖେଳଉଛି ସିଏ ମଧ୍ୟ ଏକ ରାକ୍ଷସ । ଦେଖିଲେ ଏ ଲୋକଟା ସହିତ ଯୁକ୍ତି କରିହୋଇ ପାରିବନି । ତେଣୁ ସେ ନୀରବ ରହିଲେ ।

ଭଜଗାନ କିନ୍ତୁ ପ୍ରିଷ୍ଟଲେଙ୍କୁ ଛାଡ଼ିବାକୁ ନାରାଜ । ସେ ମାଟିକିରି କହିଲେ, 'ଆପଣ ଜାଣନ୍ତି ସେଲବର୍ଣ୍ଣ ମୋର ଜଣେ ବନ୍ଧୁ ।'

ପ୍ରିଷ୍ଟଲେ କହିଲେ, 'ଆପଣ ଯେ ବନ୍ଧୁଙ୍କୁ ଭର୍ତ୍ସନା କରିବାରେ ଲାଗିଛନ୍ତି ।'

ଭଜଗାନ କହିଲେ, 'ତୁମେ ଯେଉଁ ବହିଟି ଛାପୁଚ, ତାହା ଦ୍ୱାରା ସେଲ୍‌ବର୍ଣ୍ଣଙ୍କ ସମ୍ମାନକୁ ଧ୍ୱଂସ କରିବା ସାରିହେବ । ଲୋକେ ସେଲ୍‌ବର୍ଣ୍ଣଙ୍କୁ ଦୋଷ ଦେବେ ।'

ପ୍ରିଷ୍ଟଲେ ସଂଯତ ଓ ନମ୍ର ସ୍ୱରରେ କହିଲେ, 'ମୁଁ କରିବାକୁ ଡରେନା । ମୁଁ ଯାହା ଅନୁଭବ କରିଚି ବା କରିବି, ତାକୁ ଅନ୍ୟକୁ ନିଶ୍ଚୟ ଜଣାଇବି । ସେ ଅଧିକାର ମୋର ଅଛି । ବହିଟି ନିଶ୍ଚୟ ପ୍ରକାଶ ପାଇବ ।

ବହିଟି ସେ ବର୍ଷ ଛପା ହେଲା । ଖବରକାଗଜମାନଙ୍କରେ ଏହା ବିରୋଧରେ ବହୁ ଆଲୋଚନା ପ୍ରକାଶ ପାଇଲା । ଧର୍ମାନ୍ଧ ଲୋକେ ପ୍ରିଷ୍ଟ୍‌ଲେଙ୍କ ଉପରେ ଗାଳି ବର୍ଷଣ କଲେ । ପ୍ରିଷ୍ଟ୍‌ଲେ ଧର୍ମକୁ ଏକ ବିଜ୍ଞାନ ବୋଲି ପ୍ରତିପାଦନ କରିବାକୁ ଉଦ୍ୟମ କରିବାରେ ତାଙ୍କୁ ଅନେକ ଘୃଣା ଚକ୍ଷୁରେ ଦେଖିଲେ । ପରିହାସ କରି ପତ୍ର ପତ୍ରିକାମାନଙ୍କରେ ବହୁ କବିତା ପ୍ରକାଶିତ ହେଲା । ଅନେକ କହିଲେ, "ତାଙ୍କୁ ଫାଶୀ ଦେଇଦିଅ ।"

ସେତେବେଳେ ଆମେରିକାରେ ବିଦ୍ରୋହ ଚାଲିଥାଏ । ଆମେରିକାର ଲୋକେ ବ୍ରିଟିଶ ଶାସନରୁ ମୁକ୍ତ ହେବାଲାଗି ସଂଗ୍ରାମ ଚଳାଇଥାଆନ୍ତି । ଲର୍ଡ ସେଲବର୍ଣ୍ଣ ବ୍ରିଟିଶ ପାର୍ଲାମେଣ୍ଟରେ "ଆମେରିକା ବିଦ୍ରୋହୀ" ମାନଙ୍କ ତୀବ୍ର ନିନ୍ଦା କଲେ । ମାତ୍ର ପ୍ରିଷ୍ଟଲେଙ୍କ ମତ ଥିଲା ଏହି ବିଦ୍ରୋହୀମାନଙ୍କ ସପକ୍ଷରେ । କିନ୍ତୁ ସେଲବର୍ଣ୍ଣ ଅଧୀନରେ କାମ କରୁଥିବାରୁ ତାହା ସେ ପ୍ରକାଶ କରିପାରୁ ନ ଥିଲେ । ଶେଷରେ ସ୍ଥିର କଲେ, ସେ ସେଲବର୍ଣ୍ଣଙ୍କ ଠାରୁ ସମ୍ପର୍କ ଛିନ୍ନ କରି ଅନ୍ୟତ୍ର ଗୃହିଯିବେ ।

ପ୍ରିଷ୍ଟ୍‌ଲେଙ୍କ ଶତ୍ରୁ ସଂଖ୍ୟା ଅବଶ୍ୟ ଅଧିକ ଥିଲେ । ତା ବୋଲି ତାଙ୍କର ବନ୍ଧୁ ଯେ ଆଦୌ ନ ଥିଲେ, ତାହା ନୁହେଁ । ତାଙ୍କ ବନ୍ଧୁ ଭିତରେ ଥିଲେ ମାଥ୍ୟୁ ବୋଲ୍‌ଟନ, ଜେମସ୍‌ଓ୍ୱାଟ ଏହି ଜେମସ୍ ଓ୍ୱାଟଙ୍କ କାରଖାନାରୁ ହିଁ ପ୍ରଥମ ବାଷ୍ପୀୟ ଇଞ୍ଜିନ ତିଆରି ହୋଇଥିଲା ।

ବିନେ ତାଙ୍କ ଭଉଣୀର ଜନଓ୍ୱିଲ୍‌କିସନଙ୍କଠାରୁ ଚିଠି ପାଇ ଉକଟ୍ରିପ୍ରିଷ୍ଟଲେ ଲର୍ଡ ସେଲବର୍ଣ୍ଣଙ୍କଠାରୁ ବିଦାୟ ନେଇ

କରମିଙ୍ଗହାମ୍ ଚାଲିଗଲେ । ସେଠାରେ ବନ୍ଧୁମାନଙ୍କ ଗୃହରେ ଗୋଟିଏ ଲାବରେଟୋରୀ ତିଆରି ହେଲା । ପ୍ରିଷ୍ଟଲିଙ୍କ ପାଇଁ ସମସ୍ତ ପ୍ରକାରର ସୁବିଧା କରାଯାଇଥିଲା । ସେଠାରେ ଚର୍ଚ୍ଚ ଥିଲା, ସାଙ୍ଗସାଥିମାନେ ଥିଲେ, ଲାବରେଟୋରୀ ଥିଲା, ତେଣୁ ପ୍ରିଷ୍ଟଲେ ଆରାମରେ ରହିପାରିଥାଆନ୍ତେ । ମାତ୍ର ସେ ଥିଲେ ଜଣେ ବିଦ୍ରୋହୀ । ମିଥ୍ୟା, ଅନ୍ଧବିଶ୍ୱାସ ବିରୁଦ୍ଧରେ ବିଦ୍ରୋହ କରିବା ଥିଲା ତାଙ୍କର ଏକ ଅଭ୍ୟାସ । ସେ ଯାହା ଭାବୁଥିଲେ ନିର୍ଭୀକ ଭାବରେ ଲେଖୁଥିଲେ । କେତେ ବର୍ଷ ଭିତରେ ସେ ଏପରି ଗୁଡ଼ିଏ ବିଷୟ ଲେଖିଲେ ଯେଉଁଥିରେ ସେ ଜଣେ ବୈଜ୍ଞାନିକ ବୋଲି ଲୋକେ ଭୁଲିଗଲେ । ପାର୍ଲିମେଣ୍ଟରେ ମଧ୍ୟ ତାଙ୍କ ନାଁ ପଡ଼ିଲା । ସମସ୍ତେ କହିଲେ, ପ୍ରିଷ୍ଟଲେ ଜଣେ ବିଶ୍ୱାସଘାତକ; ଦେଶଦ୍ରୋହୀ ।

୧୭୮୯ ଜୁଲାଇ ୧୦ ତାରିଖ ଦିନ ପ୍ୟାରିସର ସାନ୍‌କୁଲୋଟି ବିପ୍ଳବୀମାନେ ବିଖ୍ୟାତ ବାଷ୍ଟିଲେ ବନ୍ଦୀଶାଳା ଉପରେ ଆକ୍ରମଣ କଲେ । ଫ୍ରାନ୍ସରେ ରକ୍ତର ନଦୀ ବୋହିଲା । ଇଂଲଣ୍ଡର ଲୋକେ ଏ ଖବର ଶୁଣି ଭୀତତ୍ରସ୍ତ ହୋଇପଡ଼ିଲେ ।

ଫ୍ରାନ୍ସର ବିକ୍ଷୁବ୍ଧ ଜନତାକୁ ଦେଖି ପ୍ରିଷ୍ଟଲେଙ୍କ ମନ ଆନନ୍ଦରେ ନାଚି ଉଠିଲା । ୧୫ ବର୍ଷ ତଳେ ସେ ପ୍ୟାରିସକୁ ଯାଇ ଯାହା ଦେଖିଲେ, ତାହା ଯେ ଏକ ବିଦ୍ରୋହରେ ପରିଣତ ହେବ, ତାହା ଆଗରୁ କଳ୍ପନା କରି ସାରିଥିଲେ । ସେ ଲେଖିଲେ, "ଅତ୍ୟାଚାର ଅତ୍ୟଧିକ ନ ହେଲେ ଲୋକେ କେବେ ବିଦ୍ରୋହ କରନ୍ତି ନାହିଁ । ସେମାନେ ବଞ୍ଚିବା ଲାଗି ମୃତ୍ୟୁକୁ ବରଣ କରିବା ଲାଗି ବାହାରି ଆସନ୍ତି ।"

ପ୍ରିଷ୍ଟ୍‌ଲେଙ୍କ ଏଭଳି ଲେଖା ସବୁ ପଢ଼ି ଇଂଲଣ୍ଡର ଲୋକେ ଭାବିଲେ, ଏହି ପ୍ରିଷ୍ଟ୍‌ଲେଙ୍କ ଯୋଗୁଁ ଇଂଲଣ୍ଡରେ ମଧ୍ୟ ଦିନେ ବିଦ୍ରୋହର ନିଆଁ ଜଳି ଉଠିପାରେ । ଦିନେ ଏକ ରବିବାର ସକାଳେ ଏକ ସଭାରେ ଭାଷଣ ଦେଇ ଫେରୁଥିବା ବେଳେ ତାଙ୍କ ଘୋଡ଼ାଗାଡ଼ି ଝରକା ଉପରେ ଗୋଟାଏ ପଥର ଜୋରରେ ଆସି ବସିଲା । ଶୁଣାଗଲା- 'ପ୍ରିଷ୍ଟ୍‌ଲେ ମୁର୍ଦ୍ଦାବାଦ ।' ଏହା ଘଟିଲା ୧୭୯୧ ଜୁଲାଇ ୧୪ ତାରିଖ ଦିନ । ସେଦିନ ଥିଲା ବାଷ୍ଟିଲେ ଦୁର୍ଗର ପତନ ଦିବସ । ବରମିଙ୍ଗ୍‌ହାମର ଏକ ସମ୍ବାଦପତ୍ରରେ ଫରାସୀ ବିପ୍ଳବୀମାନଙ୍କୁ ଅଭିନନ୍ଦନ ଜଣାଇବା ଲାଗି ଏକ ଭୋଜିସଭା ଆୟୋଜନ କରାଯାଇଛି ବୋଲି ସେଦିନ ଏକ ବିଜ୍ଞାପନ ପ୍ରକାଶ ପାଇଥାଏ । ଲୋକେ ଭାବିଲେ, ଏଥିରେ ପ୍ରିଷ୍ଟ୍‌ଲେ ନିଶ୍ଚୟ ଯୋଗଦେବେ । ପ୍ରିଷ୍ଟ୍‌ଲେଙ୍କ ବିରୋଧୀ ଗୋଷ୍ଠୀ ଆଗରୁ ହୋଟେଲ ଆଗରେ ଗୁଡ଼ିଏ ମାତାଲ ଲୋକଙ୍କୁ ଆଣି ଏକତ୍ର କରାଇବା ଉଦ୍ୟମ କଲେ । ଭୋଜିସଭା ସରିଲା ପରେ ଯାଇ ଏହି ମାତାଲମାନଙ୍କ ଉପଦ୍ରବ ଆରମ୍ଭ ହେଲା । ସେମାନେ ହୋଟେଲର ଆସବାବପତ୍ର, ଝରକା ଆଦି ନଷ୍ଟ କରିଦେଲେ । ମାତ୍ର ପ୍ରିଷ୍ଟ୍‌ଲେଙ୍କୁ ପାଇଲେ ନାହିଁ । ଧାଇଁଲେ ତାଙ୍କ ଘରକୁ । ଘରେ ନିଆଁ ଲଗାଇଦେଲେ ।

ସାମାନ୍ୟ କେତେକ ଜିନିଷ ଧରି ସେ ସପରିବାର ଘରୁ ବାହାରି ଆସିଲେ ।

କିଛି ଦୂରକୁ ଯାଇ ପଛକୁ ଚାହିଁ ଦେଖିଲେ, ଗତ ୧୦ ବର୍ଷ ଧରି ସେ ଯେଉଁ ଘରେ ରହିଥିଲେ ତାହା ହୁ ହୁ ହୋଇ ଜଳୁଛି ।

ତାଙ୍କର ପ୍ରିୟ ଲାବରେଟୋରୀ ଆଜି ନ ଥିବ । ୨୦ ବର୍ଷର ସାଧନା କରି ସେ ଯେଉଁ ଲେଖା ସବୁ ଲେଖିଥିଲେ, ତାହା ପୋଡ଼ି ଜଳି ପାଉଁଶ । ପ୍ରକାଶ ପାଇ ସାରିଥିବା ବହି ସିନା ପୁଣି ଛପା ହୋଇ-ପାରିବ; ମାତ୍ର ଯାହା ଛପା ହୋଇନାହିଁ, ସେ ତ ଗଲା, ଆଉ ମିଳିବ ନାହିଁ ।

ସବୁ ପୋଡ଼ି ଧ୍ୱଂସ ହୋଇଗଲା ସତ, ମାତ୍ର ପ୍ରିଷ୍ଟ୍ଲେଙ୍କ ଅନ୍ୱେଷାର ମହାନ୍ କୀର୍ତ୍ତି ଧ୍ୱଂସ ପାଇଲା ନାହିଁ । ତାଙ୍କ ବନ୍ଧୁମାନଙ୍କୁ ଗିରଫ କରାଗଲା, ଜେଲରେ ଭର୍ତ୍ତି କରାଗଲା । ତାଙ୍କ ବିରୁଦ୍ଧରେ ମଧ୍ୟ ପରଓ୍ୱାନା ବୁଲିଲା । ୧୭୯୪ ଏପ୍ରିଲ୍ ୭ତାରିଖରେ ସେ ଇଂଲଣ୍ଡ ଛାଡ଼ି ଅମେରିକା ଚାଲିଆସିଲେ । ୧୮୦୪ ଫେବୃଆରୀ ୬ ତାରିଖରେ ସେ ପରଲୋକ ଗମନ କଲେ ।

ସେ ହେଉଛନ୍ତି ପ୍ରଥମ ବୈଜ୍ଞାନିକ, ଯିଏ କି ଅକ୍ସିଜେନ ଆବିଷ୍କାର କରିଥିଲେ । ଆଜିକାଲି ହସ୍ପିଟାଲରେ ରୋଗୀମାନଙ୍କୁ ଯେଉଁ ଅକ୍ସିଜେନ ଦିଆଯାଉଛି, ତାର ଆବିଷ୍କର୍ତ୍ତା ଯୋସେଫ୍ ପ୍ରିଷ୍ଟ୍ଲେ । ସେ କେବଳ ଅକ୍ସିଜେନ ଯେ ଆବିଷ୍କାର କରିଥିଲେ ତାହା ନୁହେଁ, ନାଇଟ୍ରୋଜେନ୍, ନାଇଟ୍ରିକ୍ ଅକ୍ସାଇଡ୍, ହାଇଡ୍ରୋକ୍ଲୋରିକ୍ ଏସିଡ୍, ଆମୋନିଆ ଓ ସଲଫରସ୍ ଏସିଡ୍ ମଧ୍ୟ ତାଙ୍କର ଆବିଷ୍କାର ।

